ସଚିତ୍ର

# ଧବଳେଶ୍ୱର ଜଣାଣ ।



ଅନୁମତିକ୍ରମେ

ଶ୍ରୀମୋହନ ଚରଣ ଦାସଙ୍କ ଦ୍ୱାରା

ପ୍ରଥମବାର ପ୍ରକାଶିତ ।




ମୂଲ୍ୟ ଟ ୦ ୯ ତିନିପଇସା ମାତ୍ର ।

ସଚିତ୍ର

# ଧବଳେଶ୍ୱର ଜଣାଣ ।



( କୃପାସିନ୍ଧୁ ବଦନ—ବୃନ୍ଦେ )

କରି ସଦୟ ହର ଜଣାଉଛୁ କିଙ୍କର ଜନ ତୁମ୍ଭର ଶ୍ରୀଚରଣେ । କରମ ହୀନ ଜନ ଅଟଇ ମୁଁ ଅଜ୍ଞାନ ଘେନ ମୋ ଦୁଃଖ ନିବେଦନ ହେ । ଧବଳେଶ୍ୱର । କ୍ଷିତି ମଧ୍ୟରେ ତୁମ୍ଭ ନାମ, କ୍ଷଣେ ମୁଁ କରୁଛି ଭଜନ, କ୍ଷିତି ପୂରଣ ତଗା ହେଉଛି ପାଗା ଯାଚା କ୍ଷଣେ ମୋ ଅବଗକୁ ଘେନ ହେ । ଧବଳେଶ୍ୱର । ୧ । ଗୁରୁତର କପଟି ହେବାରୁ ଉମାପତି ମତି ମୋ ହେଉଅଛି ଆନ । ଗଦ୍ଗଦ ଜନଠାରେ ଗିରିଜା-ପତି ବାରେ ଉଦ୍ଧାର ଏହି ଦୀନ ଜନ ହେ । ଧବଳେଶ୍ୱର । ଯାଉଅଛି ଚିନ୍ତାରେ ତନୁ, ଘଣ୍ଟାଏ ନ ପାଉଛି ମନୁ, ଘୂରୁଅଛି ମୋ ମଥା କେବଳ ଚିନ୍ତା ବ୍ୟଥା ବଢୁଛି ଦେହେଁ ଦନୁ ଦନୁ । ଧବଳେଶ୍ୱର ।୨। ନିତି ତୁମ୍ଭର ନାମ କରୁଅଛି ଭଜନ କେବଳ ତାରଣ ମାନସେ । ନ କରିଲେ ତାରଣ ଅଟେ ଜମା-କମଣ ନିନ୍ଦା ବାଜିବ ଦେବଙ୍କ ଦେହେ ହେ ।

ଧବଳେଶ୍ୱର । ଗୃହୁଁ ଗୃହୁଁ ଯେ ଗୃହୁ ପର, ଶତକୁ ଦେଉଅଛୁ ସାର, ଚଞ୍ଚଳ ହର ଦୁଃଖ ହେ ହର ପଞ୍ଚମୁଖ ଏ ଦାସ ଜନ ଯିବ ସର ହେ । ଧବଳେଶ୍ୱର । ୩ । ଛନ୍ନ ଛନ୍ନ ମୋ ମନ ହେଉଛୁ ଶ୍ରୀବଦନ ଛନଙ୍କା ପଶିଛୁ ମୋ ଗାତ୍ରେ । ଛଟେକରେ ମୋହର ଦୁଃଖ ଭାରକୁ ହର ଶ୍ରୀମୁଖେ ଜଣାଉଛୁ ଏତେ ହେ । ଧବଳେଶ୍ୱର । ଜପ କରୁଛୁ ତବ ନାମ, ଜଗତ ତୁମ୍ଭର ଭିଆଣ । ଜଗତେ ସାରଙ୍କର ଜପୁଛୁ ତ୍ରିପୁରାରି ତୁମ୍ଭର ନାମ ମୁହିଁ ଧ୍ୟାନ ହେ । ଧବଳେଶ୍ୱର । ୪ । ଝଟେ ଝଟେ ଥରତ ହରନ୍ତୁ ଭୂତନାଥ ଝୁରୁଛୁ ରାତ୍ର ଦିନ ମୁହିଁ । ଢୋଲ ମାରୁଛୁ ମୋତେ ଦେଖି ନେତ୍ରେ ନିରତେ ଚତ୍ତେ ମୁଁ ଅବତେ ଚିନ୍ତାଇ ହେ । ଧବଳେଶ୍ୱର । ଜଞ୍ଜାର ନ ଜଞ୍ଜାର ଇଚ୍ଛା, ଜଞ୍ଜାରିଣ ବୋଲି ମୋ ବାଞ୍ଛା । ଜଣା ହେଲେ କରୁଣା ତିଳମାତ୍ରକ ସିନା ସରଯିବଟି ମୋ ମାନସ ହେ । ଧବଳେଶ୍ୱର । ୫ । ଠାଣ କରି ଧରିଛୁ ଠାଣେ ନାମ ସ୍ମରୁଛୁ ଠାଣପଣେ ରଖିବ ମୋର । ଟିକିଏ କଲେ ହେଳା ସରଯିବ ମୋ ଖେଳା ଲୀଳା ଏ ସଂସାର ଭିତର ହେ । ଧବଳେଶ୍ୱର । ଠାକୁର ନ ରଖିବେ ଯେବେ । ଦୋଠି ଥରତ ହୋଇବେ । ଠିକେ ଅଣ୍ଟାଣି ବଳରାମର ଏ ଯନ୍ତ୍ରଣା ଶ୍ରୁତରେ ଶ୍ରବଣ କରିବେ ହେ । ଧବଳେଶ୍ୱର । ୬ । ଭୋଳା ଗୋଚରେ ପାଇ ଦୁଃଖ ଅଛୁ ଜଣାଇଁ ଡ଼ାକିଛୁ ରଖ ରଖ ହର । ଜିବ ଜିବ ବାଜୁଛୁ ଏ ବ୍ରହ୍ମାଣ୍ଡ ମଧ୍ୟରେ ତାରିଛ ଯେତେ ଦୁଃଖ ଭାର ହେ । ଧବଳେଶ୍ୱର । ତୁମ ବା କହୁ ନାହିଁ ମୁହିଁ । ତାଳେ ମୋ ଦୁଃଖକୁ ଜଣାଇ । ଡ଼ାକୁଛୁ ବପୁବ୍ୟାଧି ଦେଇ ଦୟା-ଔଷଧ ତାରିବା ହେବ ଗୌରୀସାଇଁ ହେ । ଧବଳେଶ୍ୱର । ୭ । ଅମ୍ବିକା ପ୍ରାଣପତି ଶୁଣ ମୋର ବିନତି ଅବିଳମ୍ବେ ହେଳ

ଶୁଣନ୍ତି । ଅଣ ଅଯୁତ ହୋଇ ଚିନ୍ତାସାଗରେ ମୁହିଁ ଭାସିଯାଉଛି ସ୍ଥଳ ନାହିଁ ହେ । ଧବଳେଶ୍ୱର । ତାରଣି ଦେଇ ତାର ହର, ତାରିବା ଅଯୁକ୍ତ ତୁମ୍ଭର । ତାର ଅବା ନ ତାର ଅଥବା ପ୍ରାଣେ ମାର ତୁମ୍ଭେ ନିଶ୍ଚେ ଏ ଇଷ୍ଟ ମୋର ହେ । ଧବଳେଶ୍ୱର । ୮ । ସ୍ଥିର କରିଛି ମନେ ନବ ପଞ୍ଚ ଭୁବନେ ନାହିଁ କେ ମୋ ଦୁଃଖ ହରଣେ । ଥକାଇ ଅଛି ଆଶା, ତୁଠାଅ ମୋ ମାନସା କଷ୍ଟ ମୁଁ ଲଭେ ଏ କଷଣେ ହେ । ଧବଳେଶ୍ୱର । ଦୟା ଯଦ ତଳେ କରିବ । ଦରିଦ୍ର ମାନସ ପୂରିବ । ଦୁଃଖ ସୁଖ ଭୋଗିଣ ଏହି ଦରିଦ୍ରଜନ ତୁମ୍ଭର ନାମ ରହିଥିବ ହେ । ଧବଳେଶ୍ୱର । ୯ । ଧନ ଜନ ଯେ ସୁତ ଅକର ବ୍ୟାଧି କଷ୍ଟ ତାରଣେ ତୁମ୍ଭର ଅଯୁକ୍ତ । ଧଳା କରିଛ କଳା ଧେନୁ ଗରଳଗିଳା ଯଶ ଘୋଷୁଛି ଏ ଜଗତ ହେ । ଧବଳେଶ୍ୱର । ନାହିଁ କେ ମୋର ଆଉ ଆନ; ନାମ ଘୋଷୁଛି ହୀନଜନ, ନିଶ୍ଚେ ତୁମ୍ଭର ଦୟା ଚନ୍ଦ୍ର ହେଲେ ଉଦୟା ନିସ୍ତରି ଯିବ ହୀନଜନ ହେ । ଧବଳେଶ୍ୱର । ୧୦ । ପୂରିଅଛ ସକଳ ଠାବେ ଚନ୍ଦ୍ରଶିଖର ପୂର୍ବ ପଶ୍ଚିମ ଉତ୍ତର କୋଣେ ପୁରାଣେ ଅଛି ଶୁଣି ଚିନ୍ତିଲି ବଜ୍ରପାଣି ନ ପାରି ଦନୁଜଙ୍କ ରଣେ ହେ । ଧବଳେଶ୍ୱର । ଫଣି ଗର୍ଜିଣ ଥାଏ ଶିରେ । ଫୁ ଫୁ କାର ଯେ ସ୍ୱନ କରେ । ଫୋପାଡ଼ି ତ୍ରିଶୂଳକୁ ମାରିଲ ତ୍ରିପୁରକୁ ତ୍ରିପୁରାରି ନାମ ଖ୍ୟାତିରେ ହେ । ଧବଳେଶ୍ୱର ।୧୧। ବଡ଼ ବଡ଼ ଯେ କଷ୍ଟ କରିଛ ହର ନଷ୍ଟ ସ୍ତୁତେ ଶୁଣିଛି ମୁଁ ଶ୍ରବଣେ । ବଡ଼ଉପା ତୁମ୍ଭର ଅଙ୍କ ଡମ୍ବରୁଧାରି ଜନେ ପୂଜନ୍ତି ଶ୍ରୀଚରଣେ ହେ । ଧବଳେଶ୍ୱର । ଭକ୍ତିରେ ମାନସିକ କରି । ଭବ ତରନ୍ତି ନର-ନାରୀ । ଭୂତନାଥ କହିଁତେ ଘେନ ଘେନ ଭୂତଡ ବଳରାମର ଯେ ଗୁହାରି ହେ । ଧବଳେଶ୍ୱର । ୧୨ ।

ମହାନଦୀ କୂଳରେ ବିଜେ କରିଣ ଅଛ ନାମ ଖ୍ୟାତ ଧବଳେଶ୍ୱର । ମହାମହା ଦୁଃଖରେ ଯେ ତୁମ୍ଭ ନାମ ସ୍ମରେ ତାଙ୍କୁ ବରଦଅ ଈଶ୍ୱର ହେ । ଧବଳେଶ୍ୱର । ଯୁଗଯୁଗାନ୍ତେ ତୁମ୍ଭ କୀର୍ତ୍ତି । ଯଶ ଯେ ଘୋଷଇ ଧରିତ୍ରୀ । କଣେ ବା ମୋହ ପଶୁ ଅହେ ତ୍ରିପୁରାନ୍ତାରୀ । ତାରଣ ଦଅ ସଦାଗତ ହେ । ଧବଳେଶ୍ୱର । ୧୩ । କଷ୍ଟ ଖଣ୍ଡନ ହର ନାମ ଅଟେ ତୁମ୍ଭର



ଜାଣୁଛୁ ସର୍ବଦା ଅମ୍ଭରେ । କଷ୍ଟ ହେବାରୁ ମୋର, ଜଣାଉଛୁ ତୁମ୍ଭର କଷ୍ଟ ମୋ ଛେଦନ୍ତୁ ଦମ୍ଭରେ ହେ । ଧବଳେଶ୍ୱର । ଲାଗୁ ନାହିଁ କି ମୋ ଅରଜ । ଲାଗିଅ ଗରବ ଦରଜ । ଲାଗିଲେ ତୁମ୍ଭ ପଦ ରଜ ଯିବ ଦରଜ ଦୂର ହୋଇବ ମୋ ମନଜ ହେ । ଧବଳେଶ୍ୱର ।୧୪। ବାସ ତୁମ୍ଭ କୈଳାସ ଅଟେ ହେ କୃତିବାସ । ଅଠଗଡ଼େ ପାଉଛ ପୂଜା;ବାରଷ୍ଟ୍ରର କରେଣ,ପର ତ୍ରିଶୂଳଧାରୀ କରୁଛ ଦୁଃଖ ସୁଖ ବୃଝା ହେ । ଧବଳେଶ୍ୱର । ସବୁ ଅଇନ ଅଛୁ ପୂର୍ବ । ସର୍ବଦା ଲାଗିଛୁ କରେଣ । ସଙ୍ଗେ ଉମା ଯେସ୍ତାର ଓଙ୍କାଲ ଗଣେଶ୍ୱର କାର୍ତ୍ତିକେଶ୍ୱର ମୋହରବ ହେ । ଧବଳେଶ୍ୱର ।୧୫। ଶତ ଶତ ଇଷ୍ଟାର ପଡ଼େ ତୁମ୍ଭ ମେଜର ବୃନ୍ଦୁଛ ଓର୍ମାଇଜ୍ କର । ସାର ସାର ଯେ ଦଫା ନଥି ସାମିଲ ସଫା, ଦଫା ବା କାହାକୁ ଅଟର ହେ । ଧବଳେଶ୍ୱର । ସାଙ୍ଗେ ସାଙ୍ଗେ ଅଇନ ଧର । ଦଅ ଡିସମିସି ଡିଗିର । ସାକ୍ଷ୍ୟ ଦେଇଥା ଦଫା କିମ୍ବର ସଫା ସଫା କେ ନ ପାନ୍ତୁ

ଅପିଲ୍ ଭବ ହେ । ଧବଳେଶ୍ୱର । ୧୬ । ହଟହଟା ଜପାଳ, ଯୋଗେ ମୋର ଲଙ୍ଘାର, ଲୁହିବାର ହେଲଣି ଡେର । ହେବାରୁ ବନ୍ଧୁହନ, ହରୁଅଛୁ ମୋ ଜ୍ଞାନ ଏ ମନ ଭସ୍ମକୁ ଅଚଳ ହେ । ଧବଳେଶ୍ୱର । ଷଣେହେଁ ନ କରଣ ଡେର । କ୍ଷମା ଦଅନ୍ତୁ ସୁବିଗ୍ରହ । ଷଣକେ କର୍ଣ୍ଣ ଡେର ଶୁଣନ୍ତୁ ଶମ୍ଭୁଗୃହ । ବଳରାମ ସ୍ୱାର୍ଥ ଗୃହାର ହେ । ଧବଳେଶ୍ୱର । ୧୭ ।

ଓଁ ଶ୍ରୀ ମହାଶମ୍ଭୁ ଧବଳେଶ୍ୱରଂ ନମଃ । ଇତ ।

ସମାପ୍ତ ।



କଟକ ମନମୋହନ ପ୍ରେସରେ ଶ୍ରୀମୋହନ ଚରଣ ଦାସଙ୍କଦ୍ୱାରା
ମୁଦ୍ରିତ । ୧୯୩୦ ।

# ଭଲ କାଗଜ ଭଲ କାଳି ଭଲ ଛାପା ।

| | |
|---|---|
| ବୁଢ଼ିମା କାହାଣୀ ଖଣି ଟ ୦ ୱ୶ | ମହାଭାରତ ଆଦିପର୍ବ ଟ ୨ ୱ |
| ଓଡ଼ିଆ କାହାଣୀ ଟ ୦ ୱ | „ ମଧ୍ୟ ଟ ୨ ୱ |
| ସଃ ବାଲକା ରାମାୟଣ ଟ ୦ ୱ | „ ସଭା ଟ ୨ ୱ |
| ଗୈଣେଶବଭୂତ ଟ ୦ । | „ ବନ ଟ ୨ ୱ |
| ସାହାଡ଼ା ସୁନ୍ଦରୀ ଟ ୦ ୶ | „ ବିରାଟ ଟ ୧ । |
| ବଡ଼ବଡ଼ୁଆ ଡ଼ାକ ଟ ୦ / | „ ଉଦ୍ଯୋଗ ଟ ୧ < |
| ସଙ୍ଗୀତ ଛେନାଗୁଡ଼ ଟ ୦ ୷ | „ ଭୀଷ୍ମ ଟ ୧ । |
| „ ପାଚିଲାକଦଳୀ ଟ ୦ ୷ | „ ଦ୍ରୋଣ ଟ ୦ ୱ |
| ସଚିତ୍ର ପଦ୍ମପୁରାଣ ଟ ୧ < | „ କର୍ଣ୍ଣ ଟ ୦ ।୶ |
| ଅଷ୍ଟାଦଶ ପର୍ବ ସଚିତ୍ରମହାଭାରତ | „ ଶଲ୍ୟ ଟ ୦ ୷ |
| „ ୧ମ ଭାଗ ଟ ୨ < | „ ଗଦା ଟ ୦ ୷ |
| „ ୨ୟ ଭାଗ ଟ ୨ < | „ କାଇଁଶିକା ଟ ୦ ୷ |
| ନୃସିଂହପୁରାଣ ୧ମ ଟ ୧ । | „ ନାରୀ ଓ ଶାନ୍ତି ଟ ୦ । |
| „ ୨ୟ ଟ ୦ ୱ | „ ଅଶ୍ୱମେଧ ଓ ଆଶ୍ରମିକ ଟ ୦ ।୶ |
| „ ୩ୟ ଟ ୧ । | „ ମୂଷଳୀ ଟ ୦ ।୶ |
| „ ୪ର୍ଥ ଟ ୧ ୱ | „ ସ୍ୱର୍ଗାରୋହଣ ଟ ୦ ।୶ |
| „ ୫ମ ଟ ୦ ।୶ | ସଃ ରାମାୟଣ ଆଦ୍ୟକାଣ୍ଡ ଟ ୧ < |
| „ ୬ଷ୍ଠ ଟ ୦ ।୶ | „ ଅଯୋଧ୍ୟାକାଣ୍ଡ ଟ ୦ ୱ |
| „ ୭ମ ଟ ୧ ୱ | „ ଅରଣ୍ୟକାଣ୍ଡ ଟ ୦ ୱ |
| ଜୈମିନିଭାରତ ୧ମ ୨ୟ ଟ ୨ < | „ କିଷ୍କିନ୍ଧ୍ୟା ଟ ୦ ୱ |
| ଶୁକବିଳାସ ଟ ୦ ।୶ | „ ସୁନ୍ଦର ଟ ୦ ୱ |
| | „ ଲଙ୍କା ଟ ୧ ୱ |
| | „ ଉତ୍ତର ଟ ୧ । |
| ବୃହତ୍ ଏକାଦଶସ୍କନ୍ଧ ଟ ୦ ୱ । | „ ଏକତ୍ର ବନ୍ଧାଇ ଟ ୭ < |

ଏକମାତ୍ର ଠିକଣା

**ପ୍ରୋପ୍ରାଇଟର ଶ୍ରୀମୋହନ ଚରଣ ଦାସ ।**

**ମନମୋହନ ପ୍ରେସ ଓ ପୁସ୍ତକାଳୟ**

ପୋଃ ଅଃ ଗୁହନାଚୌକ କଟକ ।